# କିଶୋର ଚନ୍ଦ୍ର

## ନାଟକ ।

୬ ଶ୍ରୀ ବଳଦେବ୍ ରଥ କବିସୂର୍ଯ୍ୟ ସତ୍ପୁରୁଷଙ୍କ କୃତ
( ଚମ୍ପୂ ସଙ୍ଗୀତ । )

ବ୍ରଜବାସୀ
ଶ୍ରୀ ବୈଷ୍ଣବଚରଣ ଦାସ ବାବାଜୀଙ୍କଦ୍ୱାରା
ସରଳ ଭାଷାରେ ଗଦ୍ୟାନୁବାଦ ।

ଶ୍ରୀ ଦାଶରଥି ଦାସଙ୍କ ଦ୍ୱାରା ପ୍ରକାଶିତ ।



ପ୍ରଥମ ସଂସ୍କରଣ ।

Printed by B. S. Das,
Mukur Press,
CUTTACK.
1928.

ମୂଲ୍ୟ ଟ ୦ ୵ ଦୁଇଅଣା ମାତ୍ର ।

# କିଶୋରଚନ୍ଦ୍ର

ନାଟକମ୍

## ପ୍ରଥମ—ଅଭିନୟ ।

### ପ୍ରଥମ ଦୃଶ୍ୟ ।

(ଶ୍ରୀରାଧାଙ୍କ ପୁଷ୍ପବାଟିକା ।)

(ଲଳିତା ସଖି ଓ ଶ୍ରୀରାଧା ।)

ଶ୍ରୀରାଧା—ସଖି ! କାଲି ଦୂରରୁ ମୋ ଆଖି ଯାହା କଳପକାଇଲା ତା, ତ ମୁଁ କଥାରେ କହିପାରୁନାହିଁ ? ଆହା, ସତେ କିନହେଲା !

### ଗୀତ ।

(ରାଗ ସାବେରୀ—ତାଳ ଝିପଟା ।)

କିହେଲାରେ ! କହିତ ନୁହଇ ଭାରତୀରେ ।
କାଲି ଯାଦୁରରୁ ସଖି ! କଳନା କଲା ମୋ ଆଖି,
କଳା ଇନ୍ଦୀବର ଆରତୀରେ । ଘୋଷା ।

କେଳି କଦମ୍ବ ଲତାର, କୋଟିଏ କି ଶ୍ୟାମଳତାର
ତେଜ ସେ ରବିସୁତାର ତୀରେ ।
କମ୍ପି ମୋର କଳେବର, ଟହାଇଗଲା ଆରପାର..
ଯାହାକୁ ଡରଇ ତା'ରତୀରେ ! ୧ ।

ଲଳିତା—ସଖି ରାଧେ ! ଆଜ ଏ କି କଥା କହୁଚୁ
ପ୍ରକୃତ ଘଟଣା ଖୋଲିକରି କହ ?

ଶ୍ରୀରାଧା—ତେବେ ଶୁଣ । ସଖି ! କୁସୁମଧନୁ ତାହ୍ନଗୁଳାଶର ମୁଣାରେ କେତେ କାଣ୍ଡ ଯେ ଏକଣ କରିଥିଲା, ତା ସଂଖ୍ୟା-କରିହେବ ନାହିଁ, ମୁଁ ନିସ୍ତାଗ୍ରସ୍ତ କହୁଛି, କେବଳ ମୋ ମନ ହେଲା ହସ୍ତଗତରେ ମକ୍ତିଯିବାକୁ । ଆହା ! କି ଅପୂର୍ବମୋହନ ଲୀଳା ଧାରଣକରି କୋଟିଏ କାମର ଶୋଭାଯାକ ସେ ଶ୍ୟାମଳମୂର୍ତ୍ତି ଭୁବଯାଇଛି ? ମୁଁ ଏକାବଧାତାକୁ ଗ୍ରାର ମନେ-କରୁଚ, ଏତେହିମୂର୍ତ୍ତିଙ୍କି ସର୍ଜନାକରି ରତରେ ଲୁକଟାକୁ ବେଷ୍ଟିକରି କାହିଁକି ରଖିଲ ? କି ମତ, କି ଜାତ, କି ଶୀଳ, କି କୁଳ-ବରତ-ଲଭ, ମୋ ମନରେ କିଛି ଠଉରପାରୁନାହିଁ । ସଖି ! ପୁଣି ଶୁଣ ଅତଶୟ ଲଳିତ ମୋହକାରକ କି ସ୍ୱନଟିଏ କୁଞ୍ଜ ଗୃହଉନରୁ ଆସି ମୋକର୍ଣ୍ଣମୂଳକୁ ଚୁମ୍ବି ଦେବାରୁ ସେଠକବେଳୁ ମୁଁ କଲବଲ ଛଟପଟ ହୋଇଯାଉଛି, ଆଉ ବେଶଭୂଷଣ ଭୋଜନ ପର୍ଯ୍ୟନ୍ତ ବିରକ୍ତ ବୋଧହେଉଚ । ସଖି ! ପ୍ରୀତ ତ କରୁ ନ କରୁ ଭଏ କି ଦଣ୍ଡ ହେଲା ? ଏଥିପାଇଁ କଅଣ ଉପାୟ ଜାଣିଥିଲେ କହିଲୁଭଲା ?

ଲଳିତା—(ଛଳଶ୍ଳେଷରେ) ଖଞ୍ଜନାକ୍ଷୀଗୋ ! ଏପରି ସାହସ କାହିଁକି କଲୁ ? ତୁ ତ ଏବେ ଖରାପ ହେଇଗଲୁଁ ସଧେ ! ଅଉ ଉପାୟ କଅଣ ମାଗୁଚୁ ? କହୁଚି ଶୁଣୁ ।

## ଗୀତ ।

(ରାଗ କେଦାର—ତାଳ ଝିପଟା ।)

ଖରାପ ତୁ ହେଲୁରେ ! ଖେଳା ଲୋକ ଖଞ୍ଜନାକ୍ଷୀ
କି ସାହସ କଲୁରେ । ଘୋଷା ।

ଝିଙ୍କ ହୋଇ ସୁରତରୁ କୁସୁମ ବାଞ୍ଛିଲୁରେ ।
ଖେଦଗଜ ନଜ ହୃଦ ଭେଦାରେ ଉଞ୍ଚିଲୁରେ । ୧ ।
ଝିଆଲଟେ କି ଧନ ମନରେ ସ୍ୱଳିଲୁରେ ।
ଝଙ୍କାର ନୋହୁ କଳା ନାଗକୁ ସ୍ପୃଶିଲୁରେ । ୨ ।

ରାଧିକେ ! କି ଅମଳ ଖାଇଦେଇ ଏପରି ଅଚେତା ହୋଇ ଗଲୁ ? ଏଡ଼େବଡ଼ ତୀକ୍ଷ୍ଣ ଶସ୍ତ୍ରାଧାରଗୁଡ଼ାକରେ ଶଠ ମନେକରି ଶୋଇପଡ଼ିଲୁ ? ପୁଣି ପ୍ରଖର ସୂର୍ଯ୍ୟକିରଣକୁ ହୃରଣକରି ଝାଉଁଳି ଯାଉଚୁ, ଆହା ! ଗଗନମଣି ମଣ୍ଡଳକୁ ଧରିବାକୁ କାହିଁକି ହାତ ବଢ଼ାଇଦେଲୁ ? ଆମ୍ଭେ ସଖୀମାନେ ପରା ଆଗରୁ ତୋ ପାଖେ ଥିଲୁଁ, ଖଣ୍ଡ ହାତରେ ଧନକୁ ଦାନକରି ଆମ୍ଭମାନଙ୍କୁ ଯାହା ପଦେହେଲେ କହିଲୁନାହିଁ ଇଏ ତୋର କେଡ଼େ ଅବିଚାର ?

ଶ୍ରୀରାଧା—ସଖି ଲଳିତେ ! ଗଳ୍ପ କଥାତ ଜାଣି, ଆଉ ତା, ଭାବିଲେ କଅଣ ହେବ, ମୋ ବ୍ୟଥା କହିପଡ଼ିବାକୁ ଦିନା ମୁଁ ତୋତେ ଗୁପତକରି ପଚାରିଲି, ତୁ ଯା' ପ୍ରକଟକରି ଦେଲା ।

## ଗୀତ ।

ରାଗ ତୋଡ଼ିପରଜ—ଆଦିତାଳ ।

ଗଲ୍ପଣିତ ଗଳ୍ପକଥାରେ ସଙ୍ଗାତ ! ଗଲ୍ପଣିତ ଗଳ୍ପକଥା ।
ଗୁପତେ ସିନା ମୁଁ ତୋତେ ପଚାରୁଛି କହିପଡ଼ିବାକୁ ବ୍ୟଥାରେ ।
ସଙ୍ଗାତ ! ଗଲ୍ପଣିତ ଗଳ୍ପକଥା । ପଦ ।

ଗଙ୍ଗାରୁ ବଳବ ଗମ୍ଭୀର ତୋ ହୃଦ ଗଣ୍ଠିଧନ ତୋର ସ୍ନେହ ।
ଗୋଡ଼ ଖସି ଖେଦ ହେବାର ଦରଦ ଯିବାର ଉପାୟ କହରେ ।୧

ଗଣ୍ଡାଇକ ଜାଣି ଲଗିଥାଟଙ୍କ ପୁଣି ଉଣ୍ଡାଇଲା ମନ ଫଳ ।
ଗୋଲା ଗରଳକୁ କରୁ ପୀୟୂଷକୁ ସ୍ୱାଦୁଗୁଣ ଗଲା ବଢ଼ିରେ । ୨ ।

ଟିଳିଦେଲା ପୁରନ୍ଦର-ମାଳ-କର କଳିକାମୟ ତମିର ।
ଚହ୍ନନ କି ଗୃହ ହୋଇଲା ସନ୍ଦେହ ନିଷ୍ଟମ୍ଭ ହୋଇଲା ଦୂରରେ ।୩।

ସଖି ! ଅଳସ ନଥିବା ନାଚୁଆ ଖଞ୍ଜନପରି ସେ ସ୍ୱନ ଉଡ଼ୁଥିଲା, ଚଞ୍ଚଳ ନଳିନରେ ଗୁଳି ଗଳିଗଲେ ଯେପରି କମ୍ପଇଥାଏ, ସେହିପରି ମୋ ବୁଦ୍ଧି ବିବେକ ଯାକ ଘଉଡ଼ାଇଦେଲା, ଲଳିତେ ! ଗଗନ ପୃଷ୍ଠ ପାଇଁ କି ଏତେଡ଼ ପରିଶ୍ରମରେ ସମୟରେ କଅଣ ଘଟିବ ? ତୁ ମନଭିତରେ କପଟ ନରଖି ମୋତେ ଏଇ ଗହଳି ନଥିବା-ବେଳେ କହ ।

ସଖି ଗୋ ! ସେ ତ୍ରିପିଷ୍ଟ କନ୍ଦର୍ପ ଅବା ହେବକି ? କାହିଁକିନା ବିଶେଷଭାବରେ ମୋ ନାହାର ଭିତର ଯାଣ୍ଟିଦେଉଛି, ଆଉ ଯେତେବେଳେ ମୋ କାନପାଖକୁ ସେ ସ୍ୱନ ଛୁଇଁ ଦେଲା, ଦେହଟି-ଯାକ ପୁଲକରେ ପୂରିଗଲା. ସଖି ଏଥିକି ମୁଁ କି ଉପାୟ କରିବି ? ବସନ, ଭୂଷଣ, ଭୋଜନ ଏସବୁ ମୋ ଦେହକୁ ବିଶେଷ ଅରୁଚ କାହିଁକି କରୁଅଛି ? ମ୍ବା ଯଦି ଗୁରୁଜନମାନେ ଜାଣିବେ ତେବେ ମୋର କି ଗତି ହେବ ?

ଲଳିତା— ସଖେ ! ଆମ୍ଭେମାନେ ପ୍ରଥମରୁ ଯେତେ ଶେଜାଇଁ କହିଥିଲୁଁ ତା,ତ ତୁ କର୍ଣ୍ଣ ଦେଲେ ଶୁଣିଲୁ ନାହିଁ, ସଖି ! ଘିଅ ଘଡ଼ିକି ଅଗ୍ନି ଝାସ ପାଖରେ ରଖି ତୁ କୋମଳାଙ୍ଗୀ ହୋଇ ଏହା ଯାହା ସହିଲୁ ଏଥିକି କ କଅଣ କରିବ ?

## ଗୀତ ।

(ରାମକାମୋଦୀ—ତାଳ ଏକତାଳୀ ।)

ଯେନାଇଁ ଆମ୍ଭେ ଯେତେ କହିଲୁଁ ଗୋ !
ଶୁଣିଲୁ ନାହିଁ ବାଳା ପହିଲୁ ଗୋ ! !
ଘୃତ ଘଟକୁ ଶିଖି-ଶିଖା ପାଖରେ ରଖି,
ଶିଘ୍ର ଦେହା ଏହା ସହିଲୁ ଗୋ ॥ ଘୋଷା ॥

ଚନ୍ଦ୍ରନାଥ ନନ୍ଦନ-ଅନାଉଣିକ ମନ,
କରୁ ଯେ ଥାଉଁ ହିତ ଗୃହ୍ନିଁଲୁ ଗୋ ।
ଚିତ୍ତସ୍ଥିର କରେ ନାହିଁ, କି-ବିବେକରେ
ମହାର୍ଣ୍ଣବରେ ଅବଗାହିଲୁ ଗୋ । ୧ ।

ସଖିକେ ? ଯମୁନାତୀରକୁ ଚାହିଁନା ବୋଲି ଆମ୍ଭେମାନେ ପରା ମନାକରୁଥିଲୁଁ ! ତୁ ତା ନମାନି କଉତୁକରେ କିଆଁ ଚାହିଁ-ଦେଲୁ, ପଟ୍ଟ ହିଁ ଏ ସୁନ୍ଦର ହାତରେ ନ ନେଇ କେଉଁ ବିବେକପଣରେ ମହା ସମୁଦ୍ରରେ ଗାଧୋଇ ପକାଇଲୁ ସଖି ? ପୁଣି ଦୁଦୁରମୂଳକୁ କାଟି ମହା କାଳସର୍ପର ବିଷକୁ ଘୋରି ତାକୁ ଜହର ସଙ୍ଗରେ ପିଇ ଦେଇଛୁ, ଏବେ ଚେତନା ହଜିନା ସମ୍ଭବ ହେବ ନାହିଁ କି ? ଭାଗ୍ୟବଶତଃ ତୁ ଆମ ସୁଯୋଗରୁ ସିନା ବଞ୍ଚିଅଛୁ, ନଇଲେ ତୋ ଦଶା କଅଣ ହୋଇଥାନ୍ତା ମନେକଲୁ ସଖି ! ଏ ଯେବେ ତୋଲାଗି ତାଙ୍କୁ ଯେପରି ସମଜାଇ କହିବୁଁ, ତୋ ମନକଥା ଘଟିଲେ ସିନା ଏକା ଜୀଇବୁ, ନଇଲେ ଏ ବିରହ ଘଟନାରେ ଅବଶ୍ୟ ଜହରଖାଇ ତୋଲାଗି ଆତ୍ମାଘାତ ହେବୁଁ । ପାଦପୋଳାରେ ମରୁଁ ପଛକେ ଆଜଠାରୁ ନିକୁଞ୍ଜକୁ ଧାଇଁବା ପାଇଁ ରହିଲୁଣି, ଯାଣ୍ଡିହେଉଛୁ ସିନା, ଗୋ ପୁଂଠାପଦ୍ମ ନୟନା, ତୁ ଯାହା ଆମ୍ଭ-ମାନଙ୍କ ବଶୀଭୂତ ହେଲୁନାହିଁ, ମେଘରେ ବିଜୁଳି ଖେଳିବା ଦେଖି ଏପରି ମନ ବଳାଇ ଦେଲୁ ? ଘନକୁନ୍ତଳାଗୋ କରପରେ ଘାରିହେଲୁ ? ମୁଁ ଜାଣିପାରୁଛି, ତୁ ଅବଶ୍ୟ ସେ ମୋହନକୁ ମୋହିବୁ, ଯାହା ହେବାର ହେଲାଣି, ଏବେ ଘରକୁ ଚାଲ ମୁଁ ଏ[illegible]ମଧ୍ୟରେ ଯାଇ ଶ୍ରୀକୃଷ୍ଣଙ୍କୁ ତୋ ଦଶା ଜଣାଇବି ।

(ଦୁହେଁ ପ୍ରସ୍ଥାନ)

(ପଟପରିବର୍ତ୍ତନ)



## ଦ୍ୱିତୀୟ—ଦୃଶ୍ୟ

ଯମୁନାତୀର କଦମ୍ବ ବନ ।

(ଶ୍ରୀକୃଷ୍ଣ ତ୍ରିଭଙ୍ଗିଠାଣିରେ ଦଣ୍ଡାୟମାନ ।)

ଲଳିତା—(ପ୍ରବେଶହୋଇ) ନୂଆନାଟୁଆମଣିହେ ! ରମଣୀ ଅଙ୍ଗରେ ସୁଖ ନାହିଁକି ? ଅଳସନଥିବା ଚନ୍ଦ୍ରମୁଖଟିତ କାହିଁକି ଆଜ ନପଟ ତେଜହୀନ ଦିଶୁଚ ।

### ଗୀତ ।

(ରାଗକୁମ୍ଭ କାମୋଦୀ—ତାଳଏକତାଳି)

ନୂଆନଟ ପଟଳୀ ମୁକୁଟହେ । କାହିଁକି ଶ୍ରୀଅଙ୍ଗସୁଖ,
ନପଟ ନତେଜ ଦିଶୁଛିତ ଆଜ ନିରଳସ ଚନ୍ଦ୍ରମୁଖ । ପଦ ।
ନୀଳୋତ୍ପଳ ବାସି ହେଲା ପରି ଦିଶିଯାଉଛନ୍ତି ଦୁଲୁଣୀଅଙ୍ଗ,
ନାସା ନୀଳତଳ ଫୁଲରୁ ଅନଳ ପ୍ରସବୁଛି ବେଗ ବେଗ । ୧ ।

ନୀଳଉପବନ ନିକଟ ପବନ ସ୍ପର୍ଶକୁ ଯେବେ ଡ଼ର ।
ନଦୀକୂଳ ସ୍ଥଳ ଏ ବଡ଼ ଶୀତଳ ନୁହନ୍ତାଟିକ ବିହାର । ୨ ।
ଛନ୍ଦ ନାହିଁକି ନୟନ ନଳୀ ଦଳ ଆହା ମରଇଁ ମୋ ଧନ ।
ନବନୀତ ତନ୍ତୁ ମୃଦୁ ଦେହେ କାହୁଁ ସମ୍ଭବଲା ଏ କଦନ । ୩ ।
ନବହେମଦ୍ୟୁତ ଅମଳ ଏ ନତ ନଅନ୍ତ ଫୁଲ ଏ ବନୁ ।
କେଉଁ ପଥେ ପଡ଼ି ଗଲେ କି ସେ ସ୍ତ୍ରୀ ତୁଣ୍ଡ ଯାଉନାହିଁ ମନୁ । ୪

ଗୋପସଙ୍ଗାଳି ! ମୋ କଥା ମାନ ଏ ପାପ ଗହନରେ କଷ୍ଟହର ଆଉ ବିହାର କର ନା ।

ଶ୍ରୀକୃଷ୍ଣ—ଲଳିତେ ! ତୋ ଆସିବା ପଥକୁ ଚାହିଁ ଚାହିଁ ମୁଁ ଚିତ୍ର ପ୍ରତିମା ପରି ବସିଥିଲି, ମୁଁ ଏବେ ଆଶ୍ଚର୍ଯ୍ୟ ମଣୁଛି, ତୁ ଯାହା ଅନ୍ତର୍କରେ ଗୃହଁ ଦେଇ ମୋ ଚକ୍ଷୁରେ ତୋ ଚକ୍ଷୁ ମିଶାଇ ଦେଲୁ । ରେ ଚନ୍ଦ୍ରାପାଙ୍ଗି ! ପୂର୍ଣ୍ଣଚନ୍ଦ୍ର ଠାରୁ ସୁଧାକୁ ଚପୁଟ

ତହିଁରୁ ଝୁରିଏ ଆଣି ଏ ଚନ୍ଦ୍ରକାନ୍ତି କ ପାଦ୍ମା ଦିଆଇ ଦେଲୁ ଏଥିରୁ ତୋର ସ୍ବରୂପଂପଣ ଆଉ କୃପାଳୁ ପଣ ଜଣାଗଲା, ଆଉ ବିଧାତା ମୋ ପ୍ରାଣ ରକ୍ଷାକଲା, ତୁ ଏତେ-ସବୁ କରି ତ ଦେଇଗଲୁ ।

( ରାଗ ପଞ୍ଚମ ବସନ୍ତ—ତାଳ ଝିମ୍ପୁଟା )

ସ୍ବହିଁ ସ୍ବହିଁ ତୋ ସରଣୀ କଳୁଷକୁ ରେ ତରୁଣୀ ଚଳାଇଛି ପଦ ଥିଲି ବସି । ଚଳ ମଣିଲି ମୁଁ ତୋତେ ସ୍ବହିଁ ଯା ଅନ୍ତରକରେ ସ୍ବର ଚକ୍ଷୁ ମିଶାଇଲୁ ଆସିରେ, ଚଳା ପାଙ୍ଗି ରେ ! ଚନ୍ଦ୍ରରୁ ଚିପୁଡ଼ି ସୁଧାଝରୀ, ଚର କୁଷାନ୍ତିର ମୁଖେ ଭରି, ସ୍ବରୂପଂ କୃପାଳୁ ପଣ ବଧି ରଖିଲୁ ମୋ ପ୍ରାଣ ଦେଇଗଲୁ ତ ଏତେ ସବୁ କରି ରେ ।୧। ଚେତା ଥିଲା ପରି କିଛି ପ୍ରତୀତ ତ ହେଉଅଛି ଶକ୍ତତେଜ ଦଶୁଛି ମୋ ଦେହ । ଛନ୍ଦକୁ କି ଲଜ୍ଜାକ ସତେ ସ୍ବମର ଚକୁସ ମୋତେ ଚହ୍ନି କାହିଁ ପଗ୍ଭରିଲୁ କହ ରେ ! ଚଳା ପାଙ୍ଗି ! ତୁମ୍ଭି ରଞ୍ଜନଧମାର ମାର, ଚନ୍ଦ୍ରକା ଚନ୍ଦ୍ର ତୁଷାର ସାର । ସ୍ବର ମାରୁତରୁ ତରୁତଳ ଶୀତଳ ହେତୁରୁ ଚନାଏତ ଖେଦନାହିଁ ମୋର ରେ ।୨। ଲଳତେ ! ଚୂଳ ମୂଳୁଛିଆ ସଙ୍ଗୀମାନେ ସ୍ବରତଗରେ ଯେଉଁ ବାଜୁଛି ଚସାଉ ଥାଆନ୍ତି, ତଗ ମଗ ଶିଙ୍ଗା, ବେଣୁ, ପଟର କାହାଳ, ପ୍ରଭୃତ ବାଦ୍ୟ ନାଦମାନ ଶୁଣି ଶୁଣି ଦନେ ଦନେ ଦନ କ୍ଷେଷ ହୁଏ, ସୂର୍ଯ୍ୟ ଅସ୍ତବେଳେ ମୋ ପଛ ଆଢ଼ୁଆ କେବେ ସ୍ବର ଲାଗି ନାହିଁ, ମୁଁ ତ ଭ୍ରମ ହୋଇ କେବେ ଡ଼ରି ନାହିଁ, ମୋ ଗ୍ରାମତ କେବେ ଚମକ ନାହିଁ, ସୁବର୍ଣ୍ଣ ବରନା କେଉଁ ସୁନ୍ଦରୀ ଅପସରୀ କ ତ ମୋ ଆଖି ଦନେ କାଳେ ଦେଖିନାହିଁ । ମୁଁ ଏପରି ଚମତ୍କାର ଘଟଣା ଦେଖିଥିଲେ କଣ ପେଟରେ କପଟ ରଖି ତୋତେ କହନ୍ତି ନାହିଁ କି ?

## ଗୀତ ।

ସ୍ବମୀକର ସ୍ବରୁଚିସ ସୁନ୍ଦରୀକେଉଁ ଅମରୀ,ସ୍ବଖି ନାହିଁ ଦନେ ମୋ ନୟନ । ଚମତ୍କାର କଥା ଦେଖି କପଟ ପେଟରେ ରଖି ତୋତେ

ନନ୍ଦ ନନ୍ଦନନ୍ଦ ଧନ ରେ ! ଚଳାପାଙ୍ଗି ରେ ! ଚସଂଚର ସ୍ମିତହାସ୍ୟମୟ, ଚକ୍ଷୁ ଦେଲୁ ମୋ ହୃଦାଶୟ, ଚରଣଯୁଗଳୁ ତୋରବନ୍ଦନ୍ତୁ ମୁଁ ବାରଂବାର ସ୍ନେହସିନାହିଁ ଥିଲେହେଁ ବଞ୍ଚା-ଅରେ ଚଳାପାଙ୍ଗି ରେ ! । ୪ ।

ଲଳିତା— ଛଳ ବାହ୍ମଣହେ ! ଏ ସାହସପଣଟି ଛାଡ଼ ।

## ଗୀତ ।

(ରାଗ ମୁଖାବରୀ—ତାଳ ଝିପୁଟା)

ଛଳ ବାହ୍ମଣହେ ! ଛାଡ଼ ଏ ସାହସହେ । ପଦ ।
ଛଳତ ଆଜନ ଦଣେ, ଛପିବାରେ ଇଚ୍ଛା କ ସେ । ୧ ।
ଛେଲରୂତ ଚନ୍ଦ୍ରା ବଳି, ଗ୍ରାମରେ ଗଲଣି ଶଳି । ୨ ।
ଛୁଟି ଯାଉ ବଦେତନା, ଛଟପଟ ହେବ ସିନା । ୩ ।
ଛଣାବୁଧାପରା ଦଣେ, ଛୁଇଁ ଦେଲେ ବଷଟି ସେ । ୪ ।

ହେ ଲମ୍ପଟ ! କା, କଟାକ୍ଷ ଛଟାଛୁରୀ ତମ ହୃଦୟରେ ବାଜିଚ ସତ କହ । ମୋ ଆଗରେ ଲୁଚୁଅ ନାହିଁ ।

ଶ୍ରୀକୃଷ୍ଣ—ଲଳିତେ ! ତୁ ଯାହା ଇଚ୍ଛା ତା, କର ମୁଁ ଏତକମାଏକ ଜାଣିଚ ।

## ଗୀତ ।

(ରାଗ ପୂଜାଙ୍ଗ—ଆଡ଼ତାଳୀ)

(ମୁଁ) ଜାଣିଛୁ ଏତେ ମାଏକ ଗୋ ଲଳିତେ ! ଯାହା ଇଚ୍ଛା ତୋର ତାହା କର । ଜ୍ୱଳନରୁ ବଳି ସେହ୍ରଦନୁ କେଳି କରେ ବଲ୍ଲ-ବଗ୍ ନାହା କର । ପଦ । ଜଣକେତେ ବ୍ରଜ ଶିଶୁ ଥିଲେ ନନ୍ଦ-ପୁରୁଁ ଆସୁଥିଲ ଖେଳାଇ ସମାଜ ଜମ୍ବୁବତ-ମଣି ଶିଶ୍ରନ୍ଦ୍ରକୁ ଜଣିବାର ପୂରେ ହେଲା ମୋ ନଜର, ଲଳିତେ ।୧। ଜାତ କୁରୁବନ୍ଦ ବାତାସ୍ନନ ବୃନ୍ଦ ଅନାଇଁ ମୁଁ ଗୃଲୁଥିଲ ମନ୍ଦମନ୍ଦ ଜଙ୍ଗମ ହେବାର

ଜମ୍ବୁନଦଆଭ ଶିଶୁ ଛୁରନ୍ତ ସେ କି ପ୍ରକାରଲକ୍ଷିତେ ।୨। ଜୀବନଦ ନୀଳ ଜଳଜଯୁଗଳ ବନ୍ଧୁ-ବମ୍ଭେହୋଇ ବିକାସ ବିକୋଳ ଜାତ କଳ୍ପତର ଜର ଜର ଶର ନିକର ବରଷା ଖରତର ଲକ୍ଷିତେ । ୩ ।

ସଖି ! ସେଠିକବେଳୁଁ ଜହ୍ନରକୁ ଗୋଲ ଗିଳିଦେଲାପର ମୋ ଦେହରେ ପୀଡ଼ା ବଳି ପଡ଼ୁଚି, ଏ ଜୀବନର ଆଶା ଟଳିଯାଉଚି. ହୃଦୟଭିତରେ ମୁଁ କିଛି କଳନା କରିପାରୁଁ ନାହିଁ, ଆହା ! ସେ ଜନମନ ହରଣକାରୀ ବିଚିତ୍ର ଶୋଭା କା, କେଉଁ ପାପରେ ପୁରି ଯାଇନାହିଁ, ଏକା ମୋତେ କାହିଁକି ଏ କଷ୍ଟ ଦେଲ ?

ଲଳିତା—ଶ୍ୟାମସୁନ୍ଦର ! ଆହା ! କେତେ ୱଣ୍ଡ ହେଲ ? ୱିମଠ ମାସକେ ଯାହାକ ହୋଇଥାନ୍ତା ସେ ପୁଣି ହଜାରେ ପ୍ରହର ଲାଗିଲା ।

## ଗୀତ ।

(ରାଗ ତୋଡ଼ି ପରଜ—ଆଡ଼ତାଳି)

ୱଗଣ୍ଡ ମାସ ହେଲ ହେ ଶ୍ୟାମ ।
ୱିମିଠ ହେବାକୁ ସହସ୍ରେ ଯାମ । ପଦ ।

ୱାହାଁଲବା ନବ ତମାଳରମା । ୱିଙ୍କିଆଣି ଅଙ୍ଗେ କଲଣିକମା ।
ୱଷ୍ଟ ବଳ କୋମଳଗ୍ରୀବରୁ । ୱସଧ୍ୱଜ ୱାଞ୍ଚିପୀତାବାସରୁ । ୨ ।
ୱେମି ୱିମି ଲୁଠି ପୁଷ୍ପରସାର । ୱୂରଦାର ଏକା ହୋଇବ ସାର ।
ୱଲି ପାଞ୍ଚାଳୀ ୱଟକ ନାହିଁକି । ଖୋଲାମାଇଲା ତୁମ୍ଭଙ୍କୁ କାହିଁକି ॥

ହେ କୃଷ୍ଣ ! ୱଲକ ଗଲ ଦିନା, କିନ୍ତୁ ସବୁ ଅକାରଣ ।

ଶ୍ରୀକୃଷ୍ଣ—ରେ ଶୁଭ୍ରାଙ୍ଗି ! ମୋ କଥା ଭାଙ୍ଗନା, ମୋତେ ସାହାନ୍ତୁଅ ।

## ଗୀତ ।

(ରାଗ ମୋହନା—ଆଦତାଳ)

ନ ଭାଙ୍ଗରେ, ଶୁଭ୍ରାଙ୍ଗି ! ଭାରତୀ ହୃଅ ସାହା । ପଦ ।

ନୋହିଲେ ତୁ ପରମାଣ, ନନ୍ଦସୂନୁ ଅତନୁ ବାଣ,
ନିଃଶେଷ କଲାଣି ରତି ନାହିଁ । ୧ ।
ନୀପକୁଞ୍ଜ ଉପକଣ୍ଠେ, ନ୍ୟସ୍ତ କଣ୍ଠଅ ମୋକଣ୍ଠେ,
ନାଗଶକ୍ର ନିରୁପମ ବାହୁ । ୨ ।
ନିଷ୍ଠୁର ଏ ଯୌବନଚୈତ୍ରେ, ନ ଜାଇବ କଦାଚିତେ,
ନ ବଢ଼ାଇଲେ ତୁ ସୁଖବାହା । ୩ ।
ନେଥାନ୍ତା ବିଳାସ ତାର, ନବାନ ଏ ଅବସ୍ଥାର,
ନରେଖି ତଳାରୁ ଥରେ ଆହା । ୪ ।

ଲଳିତେ ! ତୁ ଏହା ନକଲେ କିଏ ପାଉନ୍ତି ? ମୋ ପ୍ରାର୍ଥନା ରକ୍ଷାକର ।

ଲଳିତା—ହେ ଲମ୍ପଟ ! ତୁମ୍ଭଙ୍କୁ ଅତନୁ ଏତା ଏପରି କରନ୍ତୁ, ଏଣୁ ତୁମ୍ଭର କାମନା ପୂର୍ଣ୍ଣ ହେବାପାଇଁ ମୋତେ ନାନା ପ୍ରକାରେ ଟେକାଟେକ କରୁଅଛ । କିନ୍ତୁ ମୋ ସଖିଟି ଗୁରୁ ଜନ ମାନଙ୍କ ଟାଣ ଖୁଣ୍ଟା ଗଞ୍ଜଣାରେ ସହିପିବସିନା ?

(ରାଗ ବସନ୍ତ—ଏକତାଳି)

ଟେକାଉ କି ଶର ସହିକି ବାସବ କୋଦଣ୍ଡରୁ ଚଣ୍ଡ ଧନୁ,
ଟାଣି ବନ୍ଧ ଶମ୍ବ ସଦୃଶ କଳମ୍ବ ତୁମ୍ଭଙ୍କୁ ଏତା ଅତନୁ । ଘୋଷା ।
ଟେକା ଟେକ ମୋତେ କର ନାନାମତେ ତୁମ୍ଭ କାମନାପୂରିବ ।
ଟାଣ ଖୁଣ୍ଟା ଗୁରୁଜନ ଗଞ୍ଜଣାରୁ ମୋପ୍ରାଣ ସଖୀ ସହିବ ।
ଟପାଥିବା ପର ବଚନୁ ଗୋଚର ଯେତେ ସମାଚ୍ଛର ଗୋପେ ।
ଟିପିଦେଲେ କଂସ ଆଗେ କେ ନୃଶଂସ ବନ୍ଦବନ୍ଦୀ ହେବେ ଟୋପେ
ଟେକି ଏ ସୁନ୍ଦର ଶ୍ରୀମୁଖ ଟି ପରପୁରବୁଢ଼ା ପରମାସ ।
ଟିକାଏ ହେଲେହେ ହୃଦସ୍ଥ ସଦ୍ଭେଜେ ନୋହିଲା ନାସ ବିଳାସ ।

ହେ ଶ୍ୟାମ ! ଆକାଶରୁ ସୁଧାଂଶୁ କଳାକୁ କରଗତ କରିବାକୁ ଟାଣି ରହିଛ, ତୁମର ଏକି ଆଚରଣ ?

ଶ୍ରୀକୃଷ୍ଣ—ଗୋ ଚନ୍ଦ୍ରବଦନା ! ତୋ ପଦରେ ଠକଶଠ ନ ଆଚର ମୋର ଏକଷ୍ଟ ବସ୍ତୁର କର । କପଟ-ନାଶିନି ମୋତେ ଏ ଦଣ୍ଡରୁ ପରିତ୍ରାଣ କରିବା ତୋର ଉଚିତ ନୁହେଁକି ?

## ଗୀତ ।

(ରାଗ ଦେଶାକ୍ଷ—ଆଡ଼ତାଳ)

ଠିକ ଠ ବର୍ତ୍ତୁଳ ଚନ୍ଦ୍ରାନନା ତୋ ପଦରେ । ପଦ ।

ଠକଶଠ ନ ଆଚର        ମୋ ବେଦନାକୁ ବିଚାର
ଅକପଟ ପ୍ରାଣବନ୍ଧୁ ତୋତେ ଉଚିତରେ ॥ ୧ ॥

ତୋ କର କ୍ରିଣ୍ଡାର ଦେନା—        ପ୍ରୀସ୍ମଶୀ ମୋବେଦନା
ତଲ୍ପରଇ ତୋତେ ନବ ହେଲେ କଣ୍ଠତରେ ॥ ୨ ॥

ଠାରିଦେଲେ ନେଯାଅଲେ,        ବଜନ ସ୍ପଳେ ସେ ବଲେ
ଉଗ୍ରଜବ ଷଣବୃତ ପର ସୁଚତ୍ରରେ ॥ ୩ ॥

ତଣ୍ଠୋଙ୍କି ତାପ ନାଶ        ମୂର୍ତ୍ତେ ମନମଥ ପାଶ
ବନ୍ଧନୁ କରରୁ ସିନା ମୋତେ ମୋଚନରେ ॥ ୪ ॥

ଲଲିତେ ! ତୁ ସମସ୍ତ ଦେଖି ରାଜାଙ୍କ ନେଯାକୁ ମୋ ପ୍ରସଙ୍ଗ କହି ରାଜି କରାଇ ଦେ ।

ଲଲିତା—ମନ ମୋହନ ! ପର ତରୁଣୀ ହରଣ କରିବାକୁ ଏତେ ସାହାସ କରୁଛ, ତମକୁ ଟିକିଏ ଡ଼ର ଲାଗୁନାହିଁ ?

## ଗୀତ ।

(ରାଗ ତୋଡ଼ି ପରଜ, ଆଡ଼ତାଳୀ)

ଡ଼ର ନାହିଁ ଜନ୍ହେ ! ପରତରୁଣୀ ହରଣୁଁ,
ତୋରଲାଗି ଦେଖ ସନ୍ଧ୍ୟା ହେଉଛି ସ୍ନେହପରି ଆଚରଣୁ । ପଦ ।
ତୋଳା ପ୍ରତିମାକୁ ପରୀ ତୁମ୍ଭଙ୍କୁ ଯଶୋଦା ଅଛନ୍ତି ପାଳି,

ତୁହବନ୍ତି ଧନ କେଳକ ମୋହନ କ୍ଷେଳୁଛ ଯେ କୁଳପାଳୀ । ତୁକା ଦେବା ଦନେ ଅବସ୍ଥେ ଉତ୍ପଳ ଦେଖିଛୁଁ ଶକଟ ଦଶା, ତାଙ୍କ ମଧ୍ୟମାକୁ ତାକ ଆଣିମାକୁ ଏଠାକୁ କାହା ଭରସା । ତବ ତନ୍ନ ବାଶ୍ଚ ନଃସର ବସ୍ତ୍ର-ପ୍ରହରେ ନସ୍ଥନ ଯୁଗୁଁ, ତହ ତହ ହେବ ମୃଦୁ ଅବସ୍ଥିତ ଶ୍ୟାମ ଶ୍ରୀଅଙ୍ଗଟି କ୍ଷେତୁଁ । ତାକତ ଜାଣ ମୋହନ ବଂଶୀ-ରବେ ବରହ ସୁଖେ ଏ ବନେ । ତୁବିଁ ହେବୁ ଯିବା ଆମ୍ଭେ ଫଳିବନା ନପକା ଢା ଅମ୍ଭବାନେ । ୪ ।

ହେକୃଷ୍ଣ ବନ୍ଧୁର ! ସେହି ତାଳମ୍ବ ମଞ୍ଜି ସବୁଗ ସୁନ୍ଦର ଦର୍ଶନା ତୁମ ସହିତରେ ବାଲ୍ୟ କାଳରେ ଖେଳୁଥାଏ, ତେଣୁ ତୁମ୍ଭ ମନ ଏ ବୃନ୍ଦାବନ ଯାକ ତାକୁ ଖୋଜୁଛି । ମାତ୍ର ଏ ଘଟଣା ସହଜରେ ହୋଇପାରବ ମୋତେ ଦର୍ଶନାଇଁ ।'

ଶ୍ରୀକୃଷ୍ଣ—ଲଳିତେ ! ତୁ କୃପାସୁଧା-ବର୍ଷକ ଟିକଏ ହେଲେ ଢାଳିଲୁ ନାହିଁ ।

(ରାଗ ଦେଶାକ୍ଷ—ତାଳ ଝୀପୁଟା ।—)

ତାନେତ ଢାଳିଲୁ ନାହିଁ କୃପା ସୁଧା ବର୍ଷଣରେ । ପଦ ।
ହକା ବାକୁଥାଇ ବୃନ୍ଦେ, ଲଳିତାର ହୃଦାମୃତେ, କରୁଣା ଅଛୁ ବୋଲିଦେଁ ନେଲ୍ କେ ଢା ହରକରେ । ୧ । ତୋକାଇ ଦେଲେ କୃଷିତ, ଚକୋର ଚଞ୍ଚୁରେ ଶୀତ, ସ୍ୱଚ୍ଛ ଚନ୍ଦ୍ରିକାକୁ ବତ ଯ ଏକଚ୍ଛ ସରକରେ । ୨ । ତୁଳାଇଲ ପର ତଳ, ଢଳେ ପଡ଼ିଯିବାଇଲ, ହେଲେଣି ଯେ କୁନ୍ଦ କଳୀ-ଦଶନା ଏ ସଥକରେ ॥ ୩ ॥ ହୋକୁ ଟିକ ଯିନା ହଟି ମୋସାର ଯଉଛ୍ଛ ତୁଟି ପିଇ ଦଅନ୍ତ୍ରକ ରୋଷ୍ଟିଯାକ ସେ କଶୋରକରେ ॥

ଲଳିତା—ହେ ଅତସୀ କୁସୁମ କାନ୍ତି ଶ୍ୟାମ ସୁନ୍ଦର ! ଏବେ ମୁଁ ଯାଉଛି, ମାତ୍ର ସେ ଲାବଣ୍ୟ ମଣ୍ଡିତ ଆଳମାନେ ଚେଡ଼ିରହି-ଥାନ୍ତି ସେମାନେ ବଡ଼ ଅସହଣୀ, କିନ୍ତୁ ଅବଶ୍ୟ ତା ସ୍ତୁମ୍ଭରେ ମୁଁ ତୁମ୍ଭ ଦୁଃଖ ଜଣାଇବ ।

ରାଗସୋମ—ଆଡ଼ତାଳୀ ।

ଅତସୀ କୁସୁମ ସମ ଶ୍ୟାମ ହେମୁଁ ବଲୁଛି । ଦେ । ଆଳୀ ଅରର ନବଢ଼, ଅସହ୍ୟସ୍ତୁ ସେ ଜେ ବଡ଼ । ଅବଶ୍ୟ ତା ଗ୍ରମୁରେ ମୁଁ ନବେ-ଦନ କଲୁଛି । ୧ । ଆରକତ କଲେ ମୁଖ ଅଖଣ୍ଡ ସୁଧା ମୟୁଖ ଆଦର ସରବ ମୋର ଜାଣିଲେ ହେଁ ମଲୁଛି । ୨ । ଅଧ ଅଧରରେ ସ୍ଥିତ ଭୁଲସୀ ହେଲେ ଜଳିତ ଉଦ୍ଧବ ଏହୁଛି ବୋଲି କୃପାକଲୁ ବହିଛି । ୩ । ଅଦ୍ଭୁଷ୍ଣ ବନ୍ଧୁଁ କଶୋଷ୍ଣ ଅଙ୍ଗୀକାର କଲେ ସଖୀ ଅଷ୍ଟବେ ଉଚ୍ଛିନ୍ନ ହେବ ଏ ବଲ୍ଲବ ପଲ୍ଲିଛି । ୪ ।—

ନାଗରହେ ! କଂସ ରଜାର ଉଗ୍ର ନର୍ଦ୍ଦେଶତ ଜାଣିତ, ଉଦ୍ଧ ଏକଥା ସେ ଜାଣେ ତେବେ ବୃନ୍ଦାବନ ଅଭ ଗୋକୁଳ ଦୁଷ୍ଟ ଗୋବର୍ଦ୍ଧନ ଗିରି କାହିଁରେ ଆଶ୍ରୟ ନାହିଁତି ।

(ପ୍ରସ୍ଥାନ)



ପଟ ପରିବର୍ତ୍ତନ ।

## ତୃତୀୟ ଦୃଶ୍ୟ ।

ଶ୍ରୀରାଧାଙ୍କ କକ୍ଷ ।

(ସଖିଗଣ ସହ ଶ୍ରୀରାଧାଙ୍କ ଆସୀନ)

ଲଳିତାଙ୍କ ପ୍ରବେଶ ।

ଲଳିତା—ରାଧେକେ ! ତୋହର ଯେଜ ସେ ମୋଳ ବଚନଆଁ ଶ୍ୟାମ ଆଜ ମୋମହଜ କହି ଦେଲେ ।

### ଗୀତ ।

( ରାଗ କାନଡ଼ାଗୌଡ଼ା—ତାଳଝମ୍ପୁଟା )

ତୋପେଜ ତମାଳ ଶ୍ୟାମ ମୋ ମହଜ କହିଲାରେ ।
ତଥାପିତ ହେଲେ ଡଳେ ତୋ ସ୍ନେହେ ନଉପିଲାରେ । ଦେ ।

ଚଳେ ବସନ ପ୍ରସାରି, କୁଶ ଦଶନରେ ମାରି;
କହିଲି ଯେ ଅନୁସରି ରଜତ ନ ଦଶିଲାରେ । ୧ ।
ତହିଁକ ବଚନେ ଭାବ, ଚକିଲି ମୋ ଗୃହ ଶ୍ରବ;—
ଟେକିଲୁ ଘଟନେ ଅବଧାନ ବିନା ହସିଲାରେ । ୨ ।
ଚପଳ ଜା ଚଟକୁଳୁ, ଚରୁଣୀଟା କେଉଁ କୁରୁ—
ହଳକୁ ଅଟିଲୁ ହେଉ କହ ବୋଲି ଘୋଷିଲାରେ । ୩ ।
ତାର ତୋର ସୁଲୋଚନା, ତାଟେଲ ବଚେଚନା,
ଲଜ ହୋଇନାହିଁ ତହିଁ ତୋ ଚତୁରରସିଲାରେ । ୪ ।
ଚରସ୍ୱାର ପୂର୍ବଭୂଷା, ଚରଳାଇ ସୁଖଆଶା;
ଯୋଷିକ ଚୂମ୍ବିଂ ଭୂଷା ଚମିର ବଳାସିଲାରେ । ୫ ।

ସଖିକେ ! ସ୍ନେହହୀନ ଲୋକର ମନ କଅଣ ତୋସଙ୍ଗୀତ ସ୍ଥଳତ ହୋଇପାରିବ ବୋଲି ତୁ ଏ ସାହସ କରୁଚୁ ? ଏବେ ସେ ଆଶା ଛାଡ଼ ।

ଶ୍ରୀରାଧା—ଲଳିତେ ! ତେବେ ମୁଁ ଏ ପ୍ରାଣ ରଖିବି କି ନାହିଁ ମୋ'ତେ ଅବେ କହିଲୁ ହେଲେ ?

(ରାଗ ତୋଡ଼ିଭଙ୍ଗାଳ—ଆଡ଼ତାଳୀ)

ଥାଉଚିର କହ ନଥାଉଚିର ପ୍ରିୟ ସଖି !
ଥିବ କି ଛାଡ଼ିବ ପ୍ରାଣ । ଘୋଷା ।

ଥିଲାପର ସ୍ନେହ ଲଗିଲ କି ଜନ୍ଧ ଅଛି ତୋତେ ମୋଷଣ । ୧ ।
ଅବେ ହେଲେ ବକ ହେବ ମୋତେ ନକ ବଞ୍ଚାଇବ ପଞ୍ଚବାଣ ।୨।
ଥୋକାଏ ମୋ ପ୍ରୀତି—ବଧିକ ସମ୍ପତ ନକଲେ କପଟ ଜାଣ । ୩ ।
ଅକାଇ ତୁ କହୁଁ କହୁଁ ଧୂତ ବନ୍ଧୁ ନାହିଁ ଟେରେ ମୋର ଜାଣ ।୪

ଲଳିତେ ! ହୃଦୟରେ ଛଳ ରଖି ମୋତେ ବିକଳ କରନା, ଯେ କଣ କହିଛନ୍ତି ସତ କହ ।

ଲଳିତା— ରେ ଦୁଃଖିଧନ ! ତୋ ସରସ ମନଟିକ ଦୁଃଖିତ କରନା, ଆଜ ମୁଁ ତୋର ଦମ୍ଭ ଦେଖିବାପାଇଁ ସିନା ଛନ୍ଦ କରାଇ ଦେଲି । ଏବେ ଶୁଣ—

(ରାଗ ଖଟିଆର—ଆଡ଼ତାଳୀ)

ରେ ଦୁଃଖିଧନ ! ଦୁଃଖମୟ ନକର ସରସମନ ।
ଦମ୍ଭ ଦେଖିବାକୁ ସିନାକଲି ଛନ୍ଦ ॥ ଘୋଷା ॥

ଦୂରୁଁ ମୁଁ ଯିବାର ଜାଣିହରି, ଦରିଦ୍ର ନିଧି ଲଭିଲା ପରି,
ଦ୍ୱିଗୁଣ ଆଦରେ ପ୍ରମୋଦ ନଦରେ ମଜ୍ଜି ଯେନଗଲେ କରଧରି ॥
ଦୟା ଜରଜର କରି ଚିତ୍ତ, ଦନ୍ତବାସେ ରଖି ଦରସ୍ମିତ;
ଦଣ୍ଡ ବାର ଅନାମୟ ମେ ତେ ଦେନା ଯେନ କରି ପର୍ଯ୍ୟବଲେମିତ ॥
ଦେଖିଲି ଯାହା ଶ୍ରୀ ଅଙ୍ଗ ଦ୍ୟୁତି ଦଳିତ, ହୋଇଗଲା ମୋ ଗ୍ଲାତ,
ଦ୍ୱିତୀୟାର ଶଶିରେଖା ପ୍ରାୟ ଦଶିଗଲେଣି ସେ ଇନ୍ଦ୍ରଜାଳହାସ ॥
ଦୁର୍ବଳ ସାଳସ ଦେଖି ଗ୍ଲାନି, ଦୁରୁହରେ କଷ୍ଟ ପଶୁରିଲି;
ଦର୍ପ ତମ ନାଶ,ନଳ ତେଜନ୍ତେ ତ ଆହା ମରଇଁତି ଦଗ୍ଧ ହଲି ॥
ଦୁର୍ବାର ତୋ ନେତ୍ରାଞ୍ଚଳ—ଶର, ଦେବାକୁ ଦୁଃଖ ଦୁଃସହତର,
ଦତାଳି ହେବାର ଦେବ ମନ୍ତାସାର ଜାଣି ଯା ହେଲା ମାନସ ମୋର ॥

ରାଧେ ! ତୋର ଯାହାକୁ ଅଭିଳାଷ ଅଛି ତା ନଷ୍ଟହେବ ଦଇବ— ଦେବ, ମନରୁ ଏବେ ଛଳ କଥାକୁ ଦୂରକରିଦେବା; ଏ କଷ୍ଟଯାକ ତୋର ଏଥର ଦବଯିବ ।

ଶ୍ରୀରାଧା—ଲଳିତେ ! ତାଙ୍କୁ ଧରାଦେଇ କି ଧନ ଦେଲୁ ନାହିଁ ବୋଲି, ଗୋଟ ଯୁବରାଜ ଆଜ ତୋ ହାତ ଧଇଲେ ?

## ଗୀତ

(ରାଗ ଢୋଡ଼ି କଙ୍ଗାଲ—ଆଠତାଳୀ)

ଧରାରେ କି ଧନ ତୁ ନଦେଲୁ ଆଜ ।
ଧଇଲେ କି ସତେକର ଯୁବରାଜ । ପଦ ॥

ଧରମବନ୍ଧୁଁ କି ମୋର, ଧୃପିଦେଇ ନଜକର;
କୋଳକୁ ଆଣିଲୁ କଳାଦ୍ୱିଜରାଜ । ୧ ।

ଧରାରେ ଯେତେ ପୁରୁଷ, ଧୃଷ୍ଟ ତାହାଙ୍କ ଗୁରୁ ସେ,
ଧନରୁ ଯେ ବଳେ ତାହାଙ୍କର ବ୍ୟାଜ । ୨ ।

ଧୃରନ୍ଧର ସେ ଲଙ୍ଗିତେ, ଧଳସିଲ୍ କେହ୍ନ ସତେ;
ଧମକାଇଲାକ ତୋତେ କନ୍ଦୁ ଲାଜ । ୩ ।

ଧନ୍ଦେହୋଇ କନ୍ଦଗ୍ୱାନ, ଧୃଷ୍ଟର ହୋଇବା ମନ
ଧୋଇ ଚନ୍ଦ୍ରାକଳଙ୍କ ସମାଜ ମାଜ । ୪ ।

ଲଳିତା—ନୂଆବିଳାସିନୀ ଗୋ ! ଆଗୋ ଚନ୍ଦ୍ରହାସିନ !
ତୋ ଚନ୍ଦ୍ରାରେ ଶ୍ୟାମ ନୟନଙ୍କ ନଣିରେ ନବ ଲଗୁନାହୁ, ଆଉ କୋମଳ ପଦ୍ମପଣ ଖେଦ ତାଙ୍କ ବିରହ ତାପରେ ଜଳି ପୋଡ଼ି ଯାଉଛି; କଦମ୍ବ ବନର ଶୀତଳ ପବନ ଅଗ୍ନିଶ୍ୱାସରୁ ବଳି ତାଙ୍କୁ ପୀଡ଼ା ଦେଉଛି ।

## ଗୀତ ।

(ରାଗ କାମୋଦ—ଏକତାଳୀ)

ନବବିଳାସିନୀରେ ! ନନ୍ଦନେଣ ହାସିନ ! । ପଦ । ନଶିନନ୍ଦ ନନ୍ଦନ, ନନ୍ଦାଣଠି ନୟନ, ଉନ୍ମାଦନଶେଷେ ଯାଇଜଳି । ମାପବନ ପବନ, ନଧ୍ୟମତିଶା ଧନ;—ଝଞ୍ଜା ଶ୍ୱାସରୁ କରେ କଷ୍ଟ ଦେଲ ।୧। ନସ୍ପୁର ଗୁଣ କୁଳ, ଶଲ୍ ତେଜିଲ୍ଲ ବଳ; ନଷ୍ଟସ୍ୱ ଉନବନ୍ତି ନାହିଁ-ଲେଖି, ନାଗସ୍ତ ବିମୋହନ ମନ୍ତ୍ର ମାଧବ ମନ ଜ୍ଞପନ୍ତ ଯନ୍ତ୍ରରେ ଅଛୁ ରଖି ।୨। ନାହିଁବୋଲିବା ବାଣୀ, ନପଢ଼ ନାହିଁ ଶୁଣି; ନଳନାକ୍ଷିରେ ହୋଇ ବ୍ୟସନ୍ଦେବ । ନନ୍ଦନନ୍ଦନ ପ୍ରେମ, ବଶେ ନୋହିବ ଭ୍ରମ : ନନ୍ଦିନୀମାନଙ୍କ ହେବେ ଗତ ଥିବ ।୩। ନବ ବରଷ ଘଣା କାନ୍ତି ତ ଅଛୁ କଣା ନଖାଗ୍ରେ ଉଦ୍ଧରଲା ଗୋବର୍ଦ୍ଧନ । ନବୀନ କୋଷ ନଭ, ତୋ କୁଚକି ଅଣ୍ଟିବ; କର୍ଣ୍ଣରବ ମଧ୍ୟରେ ମନେ ଯେନ ।୪।

ନିରନ୍ତରରେ ରସ ପ୍ରସ୍ରବଣ ପୀୟୂଷ, ଧୀର ଧିକ୍କାର ଶାସ୍ତ୍ର ପରି-ଲରେ । ନିମେଷକରେ ଜ୍ୱାଳା, କନ୍ଦାଇ ଲକ୍ଷ୍ମୀ ହଳା-ହଳକୁ ଯେ ସଞ୍ଚାଳି ମନ୍ଥାନାରେ । ୪ ।

ରେ ନଗୀନ ଜଡାଧର ! ରେ ତମୋଧର ! ! ରେ କୁଟୁଳ ଅଧର ! ପଛକୁ ନଷ୍ଟେ ନିଦାର ସଦନ ହେବୁ, ଚନ୍ଦ୍ରକିରଣ କଳିକା ସମୂହ ତୋ ପ୍ରତି ନିଦାଘ କାଳ ସୂର୍ଯ୍ୟକିରଣ ପରି ହେବ । ମୁଁ ତୋତେ ନିବେଦନ କରୁଛି, ତୋ ହାତ ଧରୁଛି, ନିଦ୍ରା, ଆହାରରେ ଅରୁଚି ଜନ୍ମାନା, ସେଥିରେ ତୋର ବିଶେଷ ରୁଚି ଜନ୍ମାଅ; ରେ ଚୋର ! ଆଜ୍ଞ ସେ ନୀଳକାନ୍ତ ବନ୍ଧ ଦ୍ୱାରରେ ରସନା ।

ଶ୍ରୀରାଧା—ପ୍ରିୟସଖି ଗୋ ! ତୁ ବଡ଼ ପ୍ରମାଦ । କେଉଁଠି ରହିବେ ଆଉ କେତେ ଛନ୍ଦରେ ମୋହିପାରୁ ତା, କଳା-ହେବନାହିଁ ।

## ଗୀତ ।

(ରାଗ ଭୈରବ—ଆଡ଼ତାଳୀ)

ପ୍ରିୟସଖି ! ପରମାଦ ବଡ଼ ତୁହି ଗୋ ।
ପାରୁ ଉପେ କେତେ ଛନ୍ଦ ମୋହି ଶୋ । ପଦ ।

ପ୍ରେମପଦରେ ନେଇ କାଣ୍ଡୁରୁ ବସାଇ, ପୁଣି ତନ୍ତୁ ଆଣି ତଳାତଳକୁ ଖସାଇ, ପାଞ୍ଚୋରଇ ମନୁ ନାନାବଦନ ଲସାଇ, ପୀଡ଼ୁ ଅଶ୍ରୁ ବର-ଷାଇ ଗୋ । ୧ । ପରିକଚନ୍ଦ୍ର ଋପୁଣ୍ଡ ପେଇବା ପୀୟୂଷ, ପରଶତ ସମତ୍ୟେସ ଯେବେ ହେବ ବିଷ; ପ୍ରସନ୍ନ ହେବା ଗଙ୍ଗାରେ ଜନ୍ମିଲେ କଳ୍ମଷ, ପ୍ରୟୋଗ କରିବା କିସ ଗୋ । ୨ । ପ୍ରବଞ୍ଚନା କରି ଜଣା ନଥାଏ ସନ୍ଦେହ, ପସନ୍ଦ ନୁହଇ ପର ପୁରୁଷରେ ସ୍ନେହ, ନିରବେଶ ହେବ ଯେବେ ପ୍ରାଣନ୍ତୁଲେ ଦେହ, ପ୍ରାଣୀ କି କରିବ କହ ଗୋ । ୩ । ପିଆଇ ଦୁହିଙ୍କି ଅଧର ଦୁହିଙ୍କ ଅଧର, ପଛେ

କୃଷ୍ଣ ଆଭରଣ ପୂତନା ବଧର; ପୀତପଟ ନଟନା ମୋ ଅଙ୍ଗରେ ନ ଧର, ପାଞ୍ଚଏ ମାସ ହେଉନ ଗୋ । ୪ ।

ଲଳିତେ ! ସେହି ଇନ୍ଦ୍ରନୀଳମଣି କାନ୍ତି ଶ୍ୟାମସୁନ୍ଦରଙ୍କ ପାଦରେ ମୋର ବଡ଼ ଆଶ, ପର ଅପବାଦକୁ ନାହିଁ ଭୟ କରୁଚୁ ତା' ମୁଣ୍ଡରେ ବଜ୍ରପଡ଼ୁ । ମୋତେ ନନ୍ଦନନ୍ଦନଙ୍କ ସଙ୍ଗେ ମିଳନ କରାଅ, ତୋ ପାଦରୁ ପଣ ଲଗା ।

ଲଳିତା—ଧନ ! ନିକୁଞ୍ଜକୁ ଧାଇଁ ଧାଇଁ ମୋ ପାଦତଳ ଫାଟି ଗଲାଣି, ପୁଣି ମୁଁ ଯିବି ପାରିବ ?

## ଗୀତ ।

(ରାଗ ତୋଡ଼ି ପରଜ—ଏକତାଳୀ)

ଫାଟି ପଡ଼ିବାର ନିକୁଞ୍ଜ ସଞ୍ଚାର ଖାମୁଁ ମୋ ଚରଣ ତଳ ପାରୁଛ ତୋର ଅଙ୍ଗକୁ ଦେବାର ଏଣୁ ଏକା ଏଥି ଫଳ ରେ କିଶୋର ! ଫେଣ୍ଟିଗଲ ଯେ ସହେତୁ । ଫୁଲଗଲୁ ଫୁଲ ଲଳାମ ରସିକା ଜାଣି ତବ ଶ୍ୟାମସୁନ୍ଦରେ, କିଶୋର । ୧ ।

ପନାର ନାନା ନନସ୍ତୁ କଣ୍ଠ ଦନ୍ତେ ଚୂଣ ଧରିବାର ଗଳ । ଫଠା କପାଳରେ କୁଟିଳ ହୃଦସ୍ଥା ତୋଳଇବା ଲେଖା ଥିଲାରେ କିଶୋର ! ଫନ୍ଦାଧନ ତୁ ତ ମୋର, ଫିରଆଦ କାହିଁ କରବ ତୋ ନାମେ ନନ୍ଦା କଲେ ପଡ଼ୁଛି କରରେ, କିଶୋର । ୨ ।

ଫରୁଆର ପର ଝରକରେ ଭର ରଖ ସେ ନୀଳମଣିକି । ଫଉଜ ତୁଲେ କୁଞ୍ଜଦ୍ୱାରେ ରଖାଅ କହ୍ନ ବଳି ଧାରଣୀକରେ, କିଶୋର ! ଫରମାସ ମନେ ମନେ । ଫେର ଦଅନ୍ତୁ ନସ ଆଦର ମୁଁ ଯେତେ ଯିବ ସେ ଦରକୁ ଦନେରେ, କିଶୋର ! ୩ ।

ଫଉତ ହୋଇ ଦୂରରେ ଥିଲେ ହେଲେ ଭଜଥିବାରଭ ସଦା ଫେଡନ୍ତୁ ତୋ କଷ୍ଟ ସୁଖ ଦେଇ ଅଷ୍ଟ ଛୁଡ଼ ଏ ଆମ୍ଭ ବାଞ୍ଛିତରେ,

କିଶୋରି ! ପୂର୍ଣ୍ଣା ହୋଇ ତୁ ରହ । ପେଟ ଭରି ମାତ୍ର ଅନ୍ନ ଆଉ
ଦେଶକଷ୍ଟ ଯାଉ ଜଳରଣରେ, କିଶୋରୀ ! ୪ ।

ହେ ରସନାଥ ! ଶ୍ରୀଅଙ୍ଗରେ କର୍ପୂର ଚନ୍ଦନପାଣି ସିଞ୍ଚନ ମାତ୍ରେ ପୋଡ଼ିବା ହେଉଛ, ତନୁ ଲତା ଟି ଫୁଙ୍କିଦେଲେ ଭଙ୍ଗି ଯିବାଭଳି ହୋଇ ପଡ଼ୁଛ, ହେ କିଶୋର ! ଜଗତରେ ଏଡ଼ା ପେଟର ପ୍ରକଟ ନଥିବ, ସେଥିପ୍ରତି ସାବଧାନ ଥାଇ ତୁ ଆଉ ଫଳୁଅ ହୁଅନା । ୫ ।

ଶ୍ରୀରାଧା—ହେ ବିଚକ୍ଷଣା ଲଳିତେ !

ତୋ ପ୍ରୀତି ବିନା ମୋର ଆଉ ଜଗତ ମଧ୍ୟରେ କିଏ ଅଛି ? ମୁଁ ସେନା ଖେଳରେ ଦୁହିଁକୁ ପଦେ ଅଧେ କହିଦେଲି, ମାତ୍ର ଏ ସଂସାରରେ ତୋ ସମାନ ହିତକାରୀ କେହି ନାହିଁ । ମୋ ମନକୁ ଜାଣିବାକୁ ତୁ ପାସେ ସମର୍ଥ, ସଙ୍କେତରେ ମୋ ହୃଦୟ ଭିତର କଥା ତୁ ଜାଣିପାରୁ ।

## ଗୀତ ।

(ରାଗ ସାବେରୀ—ଆଡ଼ାତାଳି)

ବିଚକ୍ଷଣାରେ ! ବିନା ତୋ ପ୍ରୀତି କେ ଗତି ଅଛି ଜଗତରେ । ଘୋଷା । ଖେଳି ଦେଲି ସେନା ଖେଳେ-କରି, କିନ୍ତୁ ତୋ ସମ ନାହିଁ ହିତକାରୀ; ଜାଣିବାକୁ ମୋ ମନ ତୁ ପାରୁ, ସଙ୍କେତରେ ମୋ ହୃଦ ଭିତର ଜାଣରେ । ୧ ।

ଏବେ କହେଁ ଯେ ଯତ୍ନକୁ ନେଇ, ବଡ଼ ଯା ଠାରୁ ଜୀବନ ନୁହେ; ବଳ ଯାହାଠାରେ ହିନ୍ଦା ରହେ, ବନ୍ଧୁରଙ୍ଗେ ବନ୍ଧୁ ବୁଲ୍-ଛନ୍ତି ଅଙ୍ଗଣାରେ । ୨ । ତଥ୍ୟପ୍ରସ ରଙ୍ଗଶେଜା ତାଙ୍କୁ, ବନ୍ଧୁ ପ୍ରାଣ ପର ପରଯାକୁ, ତଥି ତହୁଁ ନସର୍ଗ କୃପାକୁ, କୃଜେ ହେଉଛି ଏହି କଣ୍ଠେମ ବାଜଣରେ । ୩ ।

ସଖି ! ଏବେ ସ୍ମର ସେହି ଭଦସ୍ଥଳଧା ନିକଟକୁ ଯାଇ ମଦନ

ମୋହନଙ୍କର ବଂଶୀ ଗୀତସୁଧାକୁ ପାନକରିବା, ଆଉ ରାତ୍ର ନପାହୁଁଣୁ ବେଢ଼ ଯେପରି ଜାଣି ନ ପାରିବେ କୁଞ୍ଜକୁ ଫେରି ଆସିବା ।

ଲଳିତା—ତେବେ ଥାଉ ।

(ଦୁହେଁ ପ୍ରସ୍ଥାନ)

ପଟପରିବର୍ତ୍ତନ ।



## ଚତୁର୍ଥ ଦୃଶ୍ୟ ।

### କଦମ୍ବ ନିକୁଞ୍ଜ

(ଶ୍ରୀକୃଷ୍ଣ ତ୍ରିଭଙ୍ଗି ଠାଣିରେ ଦଣ୍ଡାୟମାନ ଓ ଶ୍ରୀରାଧାଙ୍କ ଲଳିତା ସଙ୍ଗରେ ସେଠାରେ ପ୍ରବେଶ)

ଲଳିତା—(ଶ୍ରୀରାଧାଙ୍କ ପ୍ରତି) ଗୋ ନୀଳ ଭୃଙ୍ଗୀ ଭ୍ରୁ ! ଏ ମଦନମୋହନଙ୍କ ତ୍ରିଭଙ୍ଗିକ ଚାହିଁ ।

### ଗୀତ ।

(ରାଗ କେଦାର ଗୌଡ଼ା—ତାଳ ତ୍ରିପୁଟା)

ଭଙ୍ଗି ଚାହିଁ, ଭ୍ରୂ ନୀଳ ଭୁଜଙ୍ଗୀ—ଭ୍ରମନ୍ତି ଜୀବସଙ୍ଗୀ । ପଦ । ସ୍ଥିର ଏ ନନ ଆଖି ଜନନରଞ୍ଜି ସଖି ଜାଣେରେ । ଭରମି ଭୂନଯା ମନ୍ମଥ ବାଣେରେ, ଭୁଜପାଶକୁ ଛନ୍ଦ ମୋଗଳେ, ରଙ୍ଗ ପାଦ· କଞ୍ଜ ଟଞ୍ଜ ଧରଣୀ ତଳେ । ଭୂମଣ୍ଡନାରେ ! ପଢ଼ । ଭଲ ମାନୁଛୁ ଦେଖ, ସୁଧା ମୟୂଖ ମୁଖ, ଅଳକାତଳେ ଅଖଣ୍ଡିତ ରୋଚନା ରେଖ ତଳକେ ଦୃଷ୍ଟିରଙ୍ଗ ସଖିରେ, କି ଟଣେ ଚନା ଚଳ ଗ୍ଭୂ ଚନ୍ଦ୍ରନାଳେ । ୧ ।

ଜଣ୍ଟିତ ନବରଙ୍ଗ କୁଣ୍ଡଳ ଯୁଗଳର ଗଣ୍ଡରେ । ଉଦୁର ଏଡ଼ିଟି କବେକ ମୁଣ୍ଡରେ;ଭବ୍ୟ ଦାମ୍ଭିକ ମାଣିକ୍ୟ ବର, ଭ୍ରମ ଜାଡ କଳ୍ପ· ଅଣ୍ଟି ମୟୂରାମ୍ବର, ଭୂମଣ୍ଡଳରେ । ପଢ଼ । ଭୂତ ଭୂଷା ବଚସ୍କ

ଶ୍ରୀନେତ୍ରନରୁ ତାଷ୍ଣ ଏ କିଶୋର କଟାକ୍ଷ କେବଳ ଏହାଲକ୍ଷ କନକାଚଳ ବକ୍ଷ, ସଖିରେ କନ୍ଦ ବଗ୍ଧର ଚନ୍ଦ୍ର ଯୁବତୀ ଧୃତ କେତେ । ୧ । ଭଙ୍ଗି ଯମୁନାରେ ଲଭିଦେବାର କେତେ ଶୋଭା ପ୍ରକାଶେ ଭରଜ ଶ ହାଲ ସେ ଚକ୍ଷ ଆକାଶେ—ଭର୍ଗ ସମାଧି ଭଙ୍ଗ କରନ୍ତ—ଭଲେ ଏହା କର କମଳ ବଂଶୀରବ ଭୁବନ୍ତ୍ରନାଦେ(ପନ୍ଥ) ଲ୍ଗ୍ନ ବହି ସଖି ବ୍ରଜନାଗ୍ଧର ଧୃତ ଶ୍ରୀଅଙ୍ଗ ଶୋଭା ଅତ ରତ ନାୟକ ଦ୍ୟୁତ, ମଦ ଦ୍ଵିରଦଗତ ସଖିରେ । ଶେଷ ନଧ୍ୟ ଚୋଚ୍ଛାଏ ନଚନ୍ଦ୍ର ଶ୍ୟାମ ନେଜ । ୩ ।

ସଖିଲେ ! ଏବେ ଆସ କଳାଚାନ୍ଦରେ ଚୋର ଏ ଗୋପଚାନ୍ଦକୁ ମିଶାଇ ମନୋରଥ ପୂର୍ଣ୍ଣ କରିବା ।

(ଏହା କହି ଧୀରେ ଧୀରେ କୁଞ୍ଜରେ ଶ୍ରୀକୃଷ୍ଣଙ୍କ ବାମପାର୍ଶ୍ୱରେ ରଖାଇବା ଅଭିନୟ ।)

(ସଖିମାନଙ୍କ ପ୍ରବେଶ ଓ ମିଳନ ଗୀତଗାନ)

ରାଗ ମାରୁଆ—ତାଳ ଝମ୍ପତା ।

ମଧୁରେ—ମନ୍ଦ ମନ୍ଦ ହୋଇ ଗନ୍ଧବହ ପ୍ରସରନ୍ତି କଦମ୍ବ ନିକୁଞ୍ଜ ସୀମାରେ ମରନ୍ଦ ସେ କେ ଚମକ ନେକେ ଲକ୍ଷିଲେ ଇସି ମରେ । ମିଳନ ଲତା ଦମ୍ଭ ବନତା ବଦନେ ମିଶି ମାରେ । ମଣ୍ଡି ହେଲା ସେ ଚନ୍ଦ୍ରସ୍ଥଳ, ମହା ରଜତ ମାହେନ୍ଦ୍ର ନୀଳ ମୟୂଖ ଶିଖିମୟ ମଣ୍ଡିର ବିଷର ପୁଷ୍ପମାରେ । ଦଦ । ମିଶିଲା ଗୃହ ନୟନ, ଚାରୁରୂହ ବଦନ, ଲଭନ୍ତି ଚାରୁ ମିଳନ ଶ୍ୟାମ ଗଉର ଦୁଇମୂର୍ତ୍ତି । ମଧୁପ ଯୁବା, ଲଭିଲା ଅଢ଼ା ନବ ସରସୀରୁହ, ମାନସ ଅଙ୍ଗ ଭେଦ ପ୍ରସଙ୍ଗ ଭଙ୍ଗି ରଚିଲା ନେହ । ମଉଳଗଲା ସେହୁ ସାହିକ ମୃତ ବଇର ସଞ୍ଚକ ଯାକ ମଜାଇଦେଲା ଦୁହିଁଙ୍କ ମନ ମହାନମୋଦ ପ୍ରବାହ । ୧ । ମଦ ଦ୍ଵିରଦ ମନ୍ଥର ହୃଦ ମୂର୍ଚ୍ଛିତ ମହୋତ୍ପଳ ଆମୋଦ ଫୁଲ୍ଲ ପରାଗ ତର ଶ୍ରୀଅଙ୍ଗ ବାସ ମୃଗ ଲାଞ୍ଛନ ମରଚ ପୂର୍ଣ୍ଣ ଧାବନ୍ତି ଦରିକାଶ ମଧୁ ମାଦକ ଗୁଣ ସୂଚକ କୋକିଳ କଳ ଘୋଷ ମଣି ମଣ୍ଡିତ ମଞ୍ଜୁ

ମଞ୍ଜୀର ଭୂଷା ଶିଞ୍ଜିତ ରସନା ହାର ଟଙ୍କାର ଦେଉଛନ୍ତି ଶ୍ରବଣେ କଲ ଦବେକ ମୋଷ । ୨ ।

ମଧୁ ମଧୁର ବଧୁ ଅଧର କିଶୋର ବର ଦଶନାମ୍ବର ଟେମ୍ବ ଚୁମ୍ବନ ଚୁମ୍ବିତ ପୁନ ମେଳା । ମୃଦୁ ମନ୍ମଥ ଧ୍ୱନ ଜନନ କରନ୍ତି ହେତୁ ଖେଳା—ମଦନ୍ଧୃତ ମଣି ବନ୍ଧୁ ଶ୍ରେଣୀ ରଚିଲ ହୋଇ ଲୋକା ମଦନାଙ୍କ ଗୃହ୍ୟ ପୀୟୂଷମୟ ମିଶ୍ରିତ ହେଉ ସେହୁ ସମୟ ମାର ମଧ୍ୟରୁ ଭଲ କି ନାହିଁ ହେଲ ସଙ୍ଗୟ ଲୋକା । ୩ । ମନ୍ଦାର ବନ ସେ ବନ ରସାତଳେ ରଚଲ ପୁନ ବରଷା ରହିଲେ ସବ ଗନ୍ଧର୍ବ ମାନେ ଗାନେ । ମାତ୍ର ତାଣ୍ଡବ ରଚିଲେ ଦେବ ବାଦ୍ୟେ ସାବ-ଧନେ । ମର୍ଦ୍ଦଳଘୋଷ ହେଲ ଝୀଙ୍କଣ ମଣ୍ଡଳେ ସବୁସ୍ଥାନେ ମୂକତ ପ୍ରାପ୍ତ ହେଲ ବିଲୋକ ମାନସ ମ୍ଳାନ କଲେ ପାଠକ ଶ୍ରୀଜଗ-ଦେବ ସେ ହୋମସ୍ତବ ବାଞ୍ଛିଲ ଧ୍ୟାନେମନେ । ୪ ।

ଇତି ଶ୍ରୀ କିଶୋରଚନ୍ଦ୍ର ଗୀତାଭିନୟ ନାଟିକା

ସମାପ୍ତ ।



Printed by B. S. Das, at the Mukur Press, Cuttack.

## ଲୀଳାବିନୋଦକାରୀମାନଙ୍କ ପରିଚୟ ।

ଶ୍ରୀକୃଷ୍ଣ—ନନ୍ଦରାଜାଙ୍କପୁତ୍ରରୂପେ (ଦ୍ୱିଭୁଜମୁରଲୀଧର ଗୋଲକପତି)

ଶ୍ରୀରାଧା—ବୃଷଭାନୁ ରାଜଜେମା ରୂପେ (ଶ୍ରୀକୃଷ୍ଣଙ୍କ ହ୍ଲାଦିନୀ ଶକ୍ତି)

ଲଳିତା—ଶ୍ରୀରାଧାଙ୍କ ଅନ୍ତରଙ୍ଗାସଖି ଓ ଦୂତିକା ।

ବିଶାଖା—ଶ୍ରୀରାଧାଙ୍କ ପ୍ରିୟନର୍ମ୍ମସଖୀ ।

ଚିତ୍ରା, ଚମ୍ପକଲତା, ଇନ୍ଦୁରେଖା, ତୁଙ୍ଗବିଦ୍ୟା, ସୁଦେବୀ, ରଙ୍ଗଦେବୀ, ପ୍ରଭୃତି ପ୍ରିୟସଖିଗଣ ।

---

ଏହି ନାଟକଖଣ୍ଡିକ ପାଞ୍ଚ ସାତଟି ବାଳକଙ୍କ ଦ୍ୱାରା ଅଭିନୟ କରାଯାଇ ପାରିବ ।

ଶ୍ରୀଶ୍ରୀ ରାଧାଗୋବିନ୍ଦ ଗ୍ରନ୍ଥମାଳା,
କଟକ ।
ତା ୧୬ । ୩ । ୬୨

ପ୍ରେମ-କୃପା-ଭିକ୍ଷୁ
ବ୍ରଜବାସୀ ବାବାଜୀ,
ଶ୍ରୀ ବୈଷ୍ଣବ ଚରଣ ଦାସ

# ଶ୍ରୀ ଶ୍ରୀ ରାଧାଗୋବିନ୍ଦ-ରାସଲୀଳା ମଣ୍ଡଳୀର

## ( ନାଟକାବଳୀ )



| | |
|---|---|
| ଶ୍ରୀକୃଷ୍ଣଙ୍କ ଜନ୍ମଲୀଳା ନାଟକ | ଦୁର୍ଜ୍ଜୟମାନ (ନାଟକ) ଟ ୦ । |
| ପ୍ରଥମଖଣ୍ଡ ଟ ୦ ।/ | ମାନ ଭଞ୍ଜନ (ନାଟକ) ଟ ୦ । |
| ଏହାର ଦ୍ୱିତୀୟ ଖଣ୍ଡ ଟ ୦ ।/ | କଳଙ୍କ ଭଞ୍ଜନ (ନାଟକ) ଟ ୦ । |
| ବାଲ୍ୟଲୀଳା ନାଟକ ୧ମ ଓ | କୃଷ୍ଣ କାଳୀ ( ନାଟକ ) ଟ ୦ ୵ |
| ୨ୟ ଖଣ୍ଡ ଏକତ୍ର ଟ ୦ ୳ | ମାନ ମିଳନ (ନାଟକ) ଟ ୦ । |
| ଚୌରୀ ଚଣ୍ଡୀ ଲୀଳା ନାଟକ ଟ ୦ ।୶ | ଅନୁର ସମ୍ବାଦ (ନାଟକ) ଟ ୦ । |
| ଦାନଲୀଳା ଓ | ଦୋଳଲୀଳା (ନାଟକ) ଟ ୦ ୵ |
| ନୌକାବିହାର ନାଟକ ଟ ୦ ୷ | ରାଇ ରାଜା (ନାଟକ) ଟ ୦ ୵ |
| ବସ୍ତ୍ର ହରଣ ଲୀଳା ,, ଟ ୦ ୵ | ଗୋଷ୍ଠଲୀଳା (ନାଟକ) ଟ ୦ । |
| କାଳୀୟଦମନ ନାଟକ ଟ ୦ ୵ | କିଶୋର ଚନ୍ଦ୍ର (ନାଟକ) ଟ ୦ ୵ |
| ଗୋବର୍ଦ୍ଧନ ଲୀଳା ନାଟକ ଯନ୍ତ୍ରସ୍ଥ | ବସନ୍ତ ଲୀଳା (ନାଟକ) ଟ ୦ । |
| ବତ୍ସ ହରଣ ନାଟକ ଟ ୦ । | ସୁବଳ ମିଳନ (ନାଟକ) ଟ ୦ ୷ |
| ଶରତ୍ ରାସ (ନାଟକ) ଟ ୦ ।/ | ବସନ୍ତ ବିହାର ନାଟକ ଟ ୦ । |
| ରାସଲୀଳା (ଗୀତାଭିନୟ) ଟ ୦ ।୵ | ପ୍ରେମବିଳାସ ନାଟକ ଟ ୦ । |
| ଭାବାନୁରାଗଲୀଳା ,, ଟ ୦ ୷ | ବିଦଗ୍ଧମାଧବ (ନାଟକ) ଟ ୧ ( |
| ଝୁଲଣ (ଗୀତ ଅଭିନୟ) ଟ ୦ ୷ | ଗୋଷ୍ଠବିହାର (ନାଟକ) ଟ ୦ ୷ |
| ନବାନୁରାଗ (ନାଟକ) ଟ ୦ । | ଗୋଷ୍ଠଯାତ୍ରା (ନାଟକ) ଟ ୦ ୷ |
| ବିଦଗ୍ଧ ବିଳାସ (ନାଟକ) ଟ ୦ । | ମଥୁରାଯାତ୍ରା (ନାଟକ) ଟ ୦ । |
| ବସନ୍ତ ଉତ୍ସବ (ନାଟକ) ଟ ୦ । | ବ୍ରଜବର୍ଦ୍ଧନ (ନାଟକ) ଟ ୦ । |
| ବିଭବ ମାନ (ନାଟକ) ଟ ୦ । | କଂସବଧ (ନାଟକ) ଟ ୦ ୳ |

ଏକମାତ୍ର ପ୍ରାପ୍ତି ସ୍ଥାନ
ଧାର୍ମିକ ପୁସ୍ତକାଳୟ } ପୋଃ ଥାଃ ଘୁମନ୍ଦିଗୀକି
ଜାଲୁକୋବାର—କଟକ ।